କବି ଶ୍ରୀ ବୈଷ୍ଣବ ପାଣିଙ୍କ ବିରଚିତ

# ବସ୍ତ୍ରହରଣ ସୁଆଙ୍ଗ ।

ବା

## ଜଳକେଳି ।

---

ଶ୍ରୀ ପ୍ୟାରମୋହନ ଦାସଙ୍କ ଦ୍ୱାରା

ପ୍ରକାଶିତ ।

କଟକ—ଅରୁଣୋଦୟ ପ୍ରେସରେ ମୁଦ୍ରିତ ।



ପ୍ରଥମ ସଂସ୍କରଣ ।

Printed by Nityananda Sahoo
at the Arunodaya Press
CUTTACK
1929


ମୂଲ୍ୟ ୦ • / ଏକଅଣା ମାତ୍ର ।




# ବସ୍ତ୍ରହରଣ ପ୍ରଥମାଙ୍ଗ ।

## ବା

## ଜଳକେଳି ।

ଗୋପୀମାନଙ୍କର ଯମୁନାକୁ ଯିବାର ନୃତ୍ୟ ପରେ ଗୀତ ।

( ବାଟଗ୍ରହ ସ୍ୱଦଃ ନାଗର—ବୃନ୍ଦେ )

ଅଏ୨ ବରଜ କାମିନୀ ଆଜ ଯମୁନା ଗାଧୋଇ ଯିବା ଗୋ । ସଜ ହୁଅ ନିଜ ନିଜ ଆଭରଣେ ଭ୍ରମୂତାକୀରେ ହରେ ପୂଜିବା ଗୋ ॥ ଅଏ ଚନ୍ଦ୍ରରେଖା ଲଳିତା ବିଶାଖା ରସଲେଖା ବନ୍ଧୁ ହିରଣ୍ୟପ୍ରଭା । ଲୋଭବତୀ ସତୀ ରତିମୋହନୀ ଗୋ ବୀଣାବାଣୀ ଅଏ ବେଣୀ ସାଜିବା ଗୋ । ୧ । ଗଜାବନସ୍ଥୁନା ଗଜାବଚରଣେ ଚଳନ୍ତେ ଅବିଶ୍ୱ ପାଇବ ଶୋଭା । ସୁବୀନବସନା ପୂରବ ବାସନା ଇଙ୍ଗିତେ ସଙ୍ଗୀତ ସୁଧା ଭୁଞ୍ଜିବା ଗୋ । ୨ । ମିଳି ଅଳି ରଙ୍ଗେ ଜଳକେଳି କରି ନୀଳନୀରେ ନଖାବଳୀ ମାଜିବା । ଶୋଭବତୀ ଦୂତୀ ସରଳା ସାବିତ୍ରୀ ସମ କୃଷ୍ଣ ନାମ ଭୁଟନ୍ତେ ଭଜିବା ଗୋ । ୩ । ସୁବାସ ତଇଲେ କୁଙ୍କୁମ ମିଳାଇ ଅଙ୍ଗେ ବୋଳି ଶୀତଳତା ବୁଝିବା । ବଇଷ୍ଣବ ଭକ୍ତ ଘଟେ ଜଳ ତୋଳି ଫେରିଆସି ଗୃହ କାର୍ଯ୍ୟେ ମଜ୍ଜିବା ଗୋ । ୪ ।



ଗୋପୀଙ୍କର ବାଟେ ଯାଉଁ ୨ ପରସ୍ପର କଥୋପକଥନ ଗୀତ ।

[ କୀର୍ତ୍ତନସୁର ]

ଲଳିତା—ହନେ ପାଣି ଘେନି, ଆଉ ଏହିବାଟେ, ଯାହା କଲ କାହ୍ନୁ ହଟିଅଛି ଗୋ । ଓଗାଳିଲ୍ ବାଟ ଏଥି ନନ୍ଦସୁତ ଭାଙ୍ଗି ପକାଇଲ୍ ମାଠିଅଛି ଗୋ । ପଦ ।

ଚନ୍ଦ୍ର—ବନେ ଏକାକିଆ, ମଥୁରା ଯାଉଛ, ଶିରେ ଥୋଇ ଦହି
ପଟୁଅଣ୍ଟା ଗୋ । ମିଛେ ମାଗେ ଘାଟ, କରଣ ଅକଟ, ପୀରତ
ଅଶେଷେଁ ଥିବୁଅଣ୍ଟା ଗୋ । ୧ ।

ଚଣାଖା—ଏ କଦମ୍ବମୂଳେ, ଛଡ଼ା ହୋଇଗଲ, ଶିରେ ବାନ୍ଧି ଗୁଞ୍ଜ
ପଟ୍ଟଅଣ୍ଟା ଗୋ । ଆମ୍ଭଘରେ ଦିନେ, ନଜର ପଡ଼ନ୍ତେ, ଧାଇଁ
ଆସି ନଟକୁଟିଅଣ୍ଟା ଗୋ । ୨ ।

ପଦ୍ମାବତୀ—ପଛ ଅଡ଼ୁ ମୋର, ପଣନ୍ତ ଟାଣନ୍ତେ, ବୋଇଲ ଭୁ
ଏତେ ଉଠିଅଣ୍ଟା ଗୋ । ମାଥ ଅଟେ ମାଡ଼, ଖୋଇବ
କହନ୍ତେ, ପଳାଇଲ ନନ୍ଦ କୁଟିଅଣ୍ଟା ଗୋ । ୩ ।

ରଙ୍ଗବତୀ—ଏହି ଘାଟରେ ଦିନେ, ଫୁଲ ତୋଳୁଥିଲ, ଲୁଚି ବସି ଥିଲ
ଝାଙ୍କିଅଣ୍ଟା ଗୋ । ଅକସ୍ମାତେ ମୋତେ, ଚମକାଇ ଦେଲ,
ଯେମନ୍ତେ ନବରେ ଖୁଣ୍ଟିଅଣ୍ଟା ଗୋ । ୪ ।

ଚନ୍ଦ୍ରାବଳୀ—ଏହି ଯମୁନାରେ, ନାବ ପାରକରେ, ମିଛେ ମିଛେ
ହୋଇ ଘାଟିଅଣ୍ଟା ଗୋ । ବଇଷ୍ଣବ ବୋଲେ, ଅଜ ଜାଣି
ଥିଲେ, ଲଗାନ୍ତା ସେ କେତେ ବାଟିଅଣ୍ଟା ଗୋ । ୫ ।



ଗୋପୀମାନେ ଯମୁନା ଜଳକୁ ଦେଖି ଗୀତ ।

( ସରସୀର ନୀର ନାଚେ ତାଳେ—ବୃନ୍ଦେ )

ତାଳେ ତାଳେ ନାଚୁଅଛି ଗୃହିଁ ଯମୁନା ପାଣି ।
ହର ଶିରେ ଖେଳେ ଯେସନ୍ତେ କାଳିଆ ଫଣୀ । ପଦ ।

ବାସ ଥୋଇଣ କୂଳେ; ଆସ ପଶିବା ଜଳେ;
ହାସ ରସ କଉତୁକେ ବେଳ ନ ହେବ ଜାଣି । ୧ ।

ମୀନେ ହଂସ କାରଣ୍ଡ, ହୋଇଅଛନ୍ତି ଭୁଣ୍ଡ,
ଭୁଣ୍ଡ ଶବଦେ ଏ ଅମ୍ଭ ହୃଦ ନଅନ୍ତି କିଣି । ୨ ।

ଜଳଚର ସକଳେ, ଦେଖି ଚରନ୍ତି କୂଳେ,
କଳ କଳ ନାଦେ ତାଙ୍କ କଳ ମିଳାଇ ପୁଣି । ୩ ।

ଦେଖ ଶରଦକାଳେ, ନୀଳ ନୀରଦମାନେ,
ଦୂର ହୋଇଲେ ନଭଦେଶରୁ ବଇଷ୍ଣବ ଭଣି । ୪ ।



## କୃଷ୍ଣଙ୍କର ଯମୁନାକୁ ଅସୁ ଆସୁ ବାଟରେ ଗୀତ ।

[ ଫାଲ୍ଗୁଦ ଏ ପ୍ରାନସାକ୍ଷୀ ଚଲେଗେଲ — ବୃନ୍ଦେ ]

ଗଲେଣି ଯମୁନାକୁ ଜଳକେଳି କରିବାପାଇଁ ଯେ ଗୋପର ଗୋରୀ । ଜଳଜବଦନାଙ୍କୁ ଅଜ ସତେ ଭେଟିବି ମୁହିଁ ଯେ ପରତେ ନାହିଁ । ପଦ । ଉପବାସେ ଗୋପବାଳୀ, କରି ଜୀବନ ସଂଖାଳି, ଭାନୁ-ସୁତାତୀରେ ବର ପାଇଲେ ହରେ ମନାଇ ସେ କେତେ ଯେତନାଇଁ ।୧। ଛଡ଼ି ବସ୍ତ୍ର ତାହାଙ୍କର, ହରିବାକୁ ମୁହିଁ ହରି, ଅଛି ଗୋପେ ଅବତରି ନାମ ବହୁଛି କହ୍ନାଇ, ମୁଁ ହେବି ବନସ୍ତ୍ରୀ । ୨ । ଷୋଳ ସହସ୍ର କାମିନୀ, ଏହି ବୃନ୍ଦାବନେ ଯେଉଁ, ବଞ୍ଚିବ ଘୋରଯାମିନୀ ସେ ନିମନ୍ତେ ଶୋଚନା ନାହିଁ, ସେ ବଇଷ୍ଣ କହି । ୩ ।



## କୃଷ୍ଣଙ୍କର ଯମୁନାରେ ଦେଖି ଗୀତ ।

[ ସେହି ରମଣୀର ବନ ଦେଖା ହନୁ—ବୃନ୍ଦେ ]

ବସୁଧାଶୋଭିନୀ ବାସ କୂଳେ ଥୋଇ ହାସ ରସେ ନୀରେ ଭାସନ୍ତି ସେ । ଉତ୍ତାନପଲ୍ଲବନେ, ଉରଜ ତରଙ୍ଗେ, ଶୈବମାଳ ପଦ୍ମ ଦଶନ୍ତି ସେ ॥ ଶ୍ୟାମ ଦୁଟେ କି ମନ୍ମଥର, ବନ୍ଧୁଅଣି ବଳେ ଫିଙ୍ଗି ଛନ୍ତି ଜଳେ ସେ କାଳ ଶୋଭିକୁ ହିଂସନ୍ତି ସେ । ୧ । କର ଗ୍ରୀଳନ୍ତେ କରଗତ, ବାତ-ଘାତେ କି ସେ ଦୋହଲେ ନଳିନୀ ରବିକର ସୁଧା ଶୋଷନ୍ତି ସେ ।୨। କୁଟିଳାକ୍ଷୀ କି ନଳପାଶୀ, ଶିକ୍ଷା କଲେ ମୋକ୍ଷ ଲଭିବା ମାନସେ ମନ-ନମ୍ଭନକୁ ନାସନ୍ତି ସେ । ୩ । କୋକନଦ କି ଯୋଡ଼ ଯୋଡ଼, ଫୁଟିଅଛି ପାଦତଳ ହେଲେ ଦଶେ କବି ହୃଦମ୍ଭକୁ କଷନ୍ତି ସେ । ୪ ।



ବାସ ଦେଖି କୃଷ୍ଣ ପତ୍ନୀନଙ୍କୁ ଆଦେଶ ।

( ଜଣା ଯାଉ ନାହିଁ ଅଉ ସ୍ନେହ ଥିଲାପରି — ବୃଟେଉ )

ଯାଅ ଯାଅ ରେ ଅନିଳ ଟେକି ଅଣ ଉଡ଼ାଇ । କୂଳେ ଥୋଇ ବାସ ଜଳେ ପଶିଛନ୍ତି ଗୋପଗୋଈ । ପଦ । ରଖ ଏ କଦମ୍ବ ଡାଳେ ବିଳମ୍ବ ନ କର ତଳେ । ଅମ୍ଭର ଅଜ୍ଞା ଅବଜ୍ଞା କର ନାହିଁ ଡର ନାହିଁ ॥ ଅମରଙ୍କ ହିତ ଅଶେ, ଜାତ ମୋର ନରଦେଶେ, ଏମନେ ନାଶିବି କଂସେ ଅଷ୍ଟମବରଷେ ମୁହିଁ କରିବି ଦେବେ ମୁକତ, କହି- ଅଛି କରି ସତ୍ୟ । ଉପକାରି ଜନଙ୍କର ପ୍ରତି ଉପକାର ପାଇଁ । ୩ । ଗୋପୀ ହର ପୂଜା ପୂର୍ବେ, ବର ବରିଲେ ଏଠାବେ । ବଇଷ୍ଣବ ଭାବେ ମୋହ ଅଙ୍ଗ ସଙ୍ଗେ ମନ ଥୋଇ । ୪ ।



ପବନ ବହନ୍ତେ ଜଳେ ଗୋପୀଙ୍କ ଗୀତ; କୃଷ୍ଣ ଦୋଳି ରଚନ ।

( କାହିଁ ଗଲ ଜୀବଂତେଶ — ବୃଟେଉ )

ଅସ ଅସ ଗୋ ଛଇଳ ଅଉ ଜଳେ ରହି ନ ପାରିବା । ପବନ ବହିଲା ଖରେ ବୃଥା ଶୀତରେ କମ୍ପି ଥିବା । ପଦ । ଶାଶୁ ପାଶେ ଭାଷି ଆସିଥିଲେ ବେଳାବେଳ ବାସକୁ ଫେରିବା । ନଣନ୍ଦ ଗଞ୍ଜଣା ସହି କମ୍ପି କପାଳେ କର ମାରିବା । ୧ । ରଙ୍ଗବାସେ ଅଙ୍ଗ ପୋଛି ସଙ୍ଗ ହୋଇ ଟଙ୍କାରେ ସରିବା । ଇଙ୍ଗିତେ ସଙ୍ଗୀତ ଗାଇ ମନୁ ସରିବ ଚିନ୍ତା ହରିବା । ୨ । କାଳ ଟେକ ପଞ୍ଚ ଶୀତ କଷଣକୁ ପାଶୋରିବା । ବିପ୍ର ବଇଷ୍ଣବ ବୋଲେ ଅଉ କଷ୍ଟ ସହି ନ ପାରିବା । ୩ ।



ଗୋପୀମାନେ ବାସ ନ ଦେଖି ଗୀତ ।

( ହେମ ବନା କି ପୁଲ ଫମ୍ପାଳି ବନ୍ଧେ — ବୃଟେଉ )

ସଙ୍ଗାତ ଗୋ ଅମ୍ଭ ବାସକେ ନେଲା । ଲଜ ବୋଝ ସେ ଅଜ ମୁଣ୍ଡରେ ଦେଲା । ପଦ । ନିଜ ବାସକୁ, କାନ୍ତ ପାଶକୁ, ଯିବା କଥା ତ

ସାତସପନ ହେଲା । ୧ । ଏକେତ ବାଳା, ନୋହୁଁ ସେ ବାଳା, ଜାତ ପଡ଼ରୁ ଯାତା ଅନ୍ତର କଲା । ୨ । ଗ୍ଲାନ ଏ ସ୍ଥାନ, ପଣବା ବନ, ଜୀବନ ଯିବା ନଷ୍ଟେ ସାର ହୋଇଲା । ୩ । କି ଯୋଗେ ସତ, ପାଦ୍ଧହ୍ଲ ଦୂତ, ବଇ ଏ ରସେ ଭ୍ରଷେ ମାରଇ ଝୋଲା । ୪ ।

ଗୋପୀଏ ଏଣେ ତେଣେ ଅନାଇ ଗୀତ ।

( ନବ ଶାରଦ ବରନ ମନମୋହନ ଛନ୍ଦ—ବୃତ୍ତେ )

ଏଣେ ସ୍ନିହାଁଗୋ ଛଇଲ ଦେଖ କଦମ୍ବ ଡାଳରେ ଦୋଳି ହେଉ-ଅଛୁ ବନମାଳୀ । ପଦ । ନେଇ ପାଲଟା ବାସ ଥୋଇଛୁ ଶାପରେ ଅମ୍ଭ ମୁଖେ ଲଗାଇବ କାଳି । ୧ । କେମନ୍ତେ ତାର ଅଙ୍ଗେ ମାଗିବା ଯାଇ ଏବେ ଅମ୍ଭକୁ ତ ଦେଖି କାହ୍ନୁ ଗଛେ ଥାଇ ଦେବ ତାଳି । ୨ । ଲାଜ ଭୟ ଉପେକ୍ଷି ଗ୍ଲଲ ସରବ ସଖୀ । ମିଳଣ ବକଳେ ତାର ନିକଟେ କରବା ଅଳି ॥ ରଙ୍ଗିଅ ରଙ୍ଗାଧର ଏ ରଙ୍ଗ ଅଟେ ତାର । ଉର କରେ ଢ଼ାଙ୍କି ଚଳ ବଇଷ୍ଣବ ଚରେ ଭୁଳି । ୪ ।

ଗୋପୀଙ୍କର କୃଷ୍ଣଠାକୁ ଗମନ ଗୀତ ।

( ଶ୍ରୀରାଧା ବାଉଳୀ—ବୃତ୍ତେ )

ବଶାଖା—ଲଜପଙ୍କେ ଅଜ ବୁଡ଼ଲୁ ବୁଡଲୁ ସଜନ ଗୋ ଗ୍ଲଲ ହେଉ ନାହିଁ । କାର କେଉଁ ଦୋଷ କରଥିଲୁ ଦୂବେ ଧଇହଟା କରେ ଅଣି ବନ୍ଧ । କଞ୍ଜଲୋଚନା ଗୋ । ବୁଦ୍ଧି ଶୁଦ୍ଧି ସବୁ ହେଲା ହତ, ଗିରଧାରୀ ଗୋପ ରଖିଲା ପରସ୍ବ ରଖିଲେ ରଖୁ ସେ ଅମ୍ଭକୁ ତ । ୧ ।

ପଦ୍ମାବତୀ—କଳାପଡ଼ଲାଣି ମୋର ଇନ୍ଦୁ ମୁଖ ଅଙ୍ଗ ସ୍ୱେଦବନ୍ଦ ଯାଏ ବନ୍ଧ । କି କରବା କେଣେ ଯିବା କହ ସଖି ବୁଦ୍ଧି ମୋତେ ଅଉ ବଶୁ ନାହିଁ । କଳବଚନା ! ରେ, ନାୟକେ ନିଷେଧ ଥିଲେ କର । କାଳେ କାଳେ ଉପକାର ହୋଇଥାନ୍ତା ତଳେ ନ ପାରଲୁ ଜାଣି ଭୋଗୁ । ୨ ।

ରଙ୍ଗବଲ୍ଲୀ—ବେଣୀଭାଙ୍ଗି କର ଠାକୁର ନାଗର ଚମ୍ପକଅ ବଷ ବେନ-
ପାଶେ । କକ୍ଷ ସନ୍ଧ ଯାଏ ଅବର ରହିବ ସ୍ଥଳ ଏହିପର କର
ଥୋକେ । ହରମଧମା ଗୋ, ଯାହାକୁ ଯେମନ୍ତେ ହୁଏ
ସଜ । କାଳପାଷା ବ୍ରଜବାଳୀ କର ଶିକ୍ଷା ଯେହିଁପର ରକ୍ଷା
ହୁଏ ଲାଜ । ୩ ।

ଚନ୍ଦ୍ରାବଳୀ—ତା ପଛେ ତା ପଛେ ଅଯ ସ୍ଥଳ ସ୍ୱଚ୍ଛେ ନିଛରେ ଉକୁର
କର କପାଁ । ଏଣେତ ମହତ ନେଲା ନନ୍ଦସୁତ ତେଣେତ
ନଣନ୍ଦେ ହେବେ ଖପା । କାଶିହାସିନୀ ରେ, ଶାଶୁଙ୍କ ବୋଲଣା
ଅଛି ଭଲେ । କପାଁ କଲୁ ନାଶ କମଣ୍ଡଳୁଧାଶ ବାରବଂଶୀ
ବଇଷ୍ଣବ ବୋଲେ । ୪ ।



## ଗୋପୀଙ୍କି ଦେଖି କୃଷ୍ଣଙ୍କର ଗୀତ ।

( ମନାଇ ପାରୁଲୁ ନାହିଁ ସେ ନନ୍ଦ କହ୍ନାଇ— ବୃତ୍ତେ )

ଅହ୍ନା କି ସଧୀରେ ଧସମଣ୍ଡନା କରନ୍ତି ଗତ ।
ଯେହିଁପର ମଦମତ୍ତ କସାନ୍ଦ୍ରପନ୍ତି ଗମନ୍ତି । ପଦ ।

ଶିଶିରେ ପଦ୍ମ ମଉଳ, ଗଳା ପଶ ମୁକ୍ତାବଳୀ, ସୀତା-ଜତାହାସୀ-
ଙ୍କର ପଢ଼େ ଦକ ଦକ ଛାତି । ୧ । କେ କାହା କନ୍ଧରେ କର, ଭସ
ଦେଇ ସମାବର, କେ କାହା ପୃଷ୍ଠଦେଶରେ ଲଗାଇ ଭଡ଼ନ୍ତି ଛାତି । ୨
ଚଳନ୍ତି କି ଗିରମାଳା, ଏକଠାବେ ହୋଇ ମେଳା, ବଇଷ୍ଣବ ଭଣେ
ଅହ୍ନା କି ଅପୂର୍ବ ରୂପ କାନ୍ତି । ୩ ।



## କୃଷ୍ଣ ଓ ଗୋପୀଙ୍କର ପ୍ରଶ୍ନୋକ୍ତି ।

ଗୋପୀ— ହେ ବସନଚୋର ଦିଅ ବସନ ଅମ୍ଭର ।
କୃଷ୍ଣ—ସତ କହ ବାସ କିଏ ନେଇଛି ତୁମ୍ଭର ।
ଗୋପୀ—କଦମ୍ବେ ଅମ୍ଭର ଶାଢ଼ୀ କିଏ ଅଛି ରଖି ।
କୃଷ୍ଣ—ଯେ ଆଣିଲା କପା ତାକୁ ନ ବୋଇଲ ଡାକି ।

ଗୋପୀ—କୂଳେ ଥିବା ବସ୍ତ୍ର ତୁମେ କେମନ୍ତେ ଅଣିଲ ।
କୃଷ୍ଣ—ଜଡିକ ଥିବ ଯେଉଁକାଳେ ପବନ ବହିଲ ।
ଗୋପୀ—ପବନ କି ଆଣି ସବୁ ରଖିଛି ଏକାଠି ।
କୃଷ୍ଣ—ଗୋଟାଇ ଆଣିଲି ପଡ଼ିଥିଲା ଏଠି ସେଠି ।
ଗୋପୀ—ହଇଅ ହରି ବେଳ ଅଛି ଉତ୍ତର ନ କର ।
କୃଷ୍ଣ—ବଜାଇ ଥିଲ କି ମୋତେ ଆଗରୁ ଗୁହାର ।
ଗୋପୀ—ମାଗୁଅଛୁଁ ପଣ୍ଡ ଫଳ କର ବନମାଳ ।
କୃଷ୍ଣ—ନ ବୁଝି ନ ଶୁଝି କିମ୍ପା ଦେଲ ମୋତେ ଗାଳି ।
ଗୋପୀ—ପଜାଇ ହଅ ଶୀତରେ ଥରୁଅଛି ଦେହ ।
କୃଷ୍ଣ—ଦେଖିଛ ଏଷଣି କର ବଢ଼ାଇଣ ନେଅ ।
ଗୋପୀ—ଦେଖୁ ନାହଁ ଗୋପୀନାଥ ଗୋପୀଙ୍କ ଅବସ୍ଥା ।
କୃଷ୍ଣ—ଉଲଗ୍ନ ହୋଇବା ନୁହେ ନାରୀଙ୍କ ବ୍ୟବସ୍ଥା ।
ଗୋପୀ—ଏ ପାପର ପ୍ରାୟଶ୍ଚିତ୍ତ ଉଚିତ ଯା କର ।
କୃଷ୍ଣ—ହେବ ଦୋଷ ମୁକ୍ତ କଥା ମାନିଲେ ମୋହର ।

---

## କୃଷ୍ଣଙ୍କର ଗୋପୀ ପ୍ରତି—ଗୀତ ।

[ ମନାକଲେ ଯେତେ ଭୁଲିବ କି ବାଳେ-ବୃନ୍ଦେ ]

କରକଦଳିନା ଟିକି କରତୁଲ ଯୁହାର କର ଗୋ ଧରମେ । ତେବେ ତୁମ୍ଭ ଦୋଷମାନ ହେବ ନାଶ କିମ୍ପା ପାଅ କଷ୍ଟ ମରମେ । ପଦ । ହୋଇ ଏକମୁଖ ଉଚ୍ଚସ୍ୱରେ ଡାକ, ଯାହା ଯାହା କଲୁ ଭରମେ । ଭ୍ରେ ଧର୍ମ ନ ଦେଖ ଅମ୍ଭ ଦୋଷମାନ, ଏହା ଥିଲା ଅମ୍ଭ କରମେ ॥ ତେବେ ତୁମ୍ଭ ଶାଢ଼ୀ ଦେବ ଗଛୁ କାଢ଼ି, ବେଢ଼ାଇ ପିନ୍ଧିବ ଚରମେ । ଇନ୍ଦୀବର-ଦୃଗା ଛନ୍ଦ ନାହିଁ ପାଦ ଦୂରେ ଫିଙ୍ଗିଦିଅ ସରମେ । ୨ । ମୋତେ କିମ୍ପା ଲାଜ କର ଗୋ ବରଜବାଳା ଚଳ-ପାଅ ଅଧମେ । ବଇଷ୍ଣବ କହି ବାଳକଟି ମୁହିଁ ଇଚ୍ଛା ନାହିଁ ନାରୀ ସଙ୍ଗମେ । ୩ ।



## ଗୋପୀମାନଙ୍କର ଧର୍ମକୁ ଦଣ୍ଡବତ କରନ୍ତେ କୃଷ୍ଣଙ୍କର ବସନ ଦାନ ଓ ଗୋପୀଙ୍କର ଗୀତ ।

[ ଯମୁନାକୁ ଜଳ ଅଣି ଯିବା ଗୋ ମିତଣି — ବୃତ୍ତେ ]

ଜଣାଗଲା ନନ୍ଦସୁତ ତୋର ଛନ୍ଦପଣିଆରେ । କନ୍ଦ ଖୀରକୁ ଦଣ୍ଡକେ କରପାରୁ ଲୁଣିଆରେ । ପଦ । ଗୋପୀଙ୍କ ଲାବଣ୍ୟ ତନୁ ଦେଖିବାକୁ କଳାକାହ୍ନୁ, ହୋଇ ଅଛି ଥିଲୁ ମାର ମନ୍ଦ ପଢ଼ା ଗୁଣିଆରେ ॥ କାମିନୀ କାଞ୍ଚନେ ପ୍ରୀତି, କ୍ଷଣକେ କରୁ ଏକାଠି, ବଚନ ପୁଟରେ ଝାଳଦେଇ ହୋଇ ବଣିଆ ରେ ॥ ଷୋଳସହସ୍ର ଗୋପୀଙ୍କର ନରେଶ୍ୱ ଅଙ୍ଗ ନକର, ପ୍ରସ୍ୱଇଲ୍ ମନ ସାଧ ବାଣୀ ଭାଷି ଟାଣୁଆରେ । ଏହା କଲୁ ପୀତବାସ, ଅଜ କେଉଁଥିରେ ଅଛ । ବଇ ଭଣି ପଥରକୁ ହେଲେ କରୁ ପାଣିଆରେ । ୪ ।



## ଗୋପୀଙ୍କ ପ୍ରତି କୃଷ୍ଣଙ୍କର ଗୀତ ।

[ ବନ ସୁଖ ନ ମିଳବ ଭବନରେ — ବୃତ୍ତେ ]

ଭୋ ବ୍ରଜବାଳା ସରଗଲା ତୁମ୍ଭର ଏତେ ।
କେତେ ଅକାରଣ ଦୋଷ କହୁଛ ମୋତେ । ପଦ ।

ନିତ' ପୀରତି ଲୁହା ଯେତେ ମାଜୁଥିବ ତେତେ ଝଟିବ ନୂଆ, ଲାଗଇ କଳଙ୍କ ନ ଦେଖିଲେ ତା ନେତେ । ୧ । ଦେଇଦାନ୍ତ କିଛି ତହିଁରୁ ଓଜନ କର ଜାଣିବା ତା ଲଘୁ ଗୁରୁ, ଦେଖିଛ ସେ ଛବି ମାନ ଅଙ୍କିଛି ଚିତ୍ତେ । ୨ । ଚୈତ୍ର ନ ପାରବେତ ନେଇ, ବାସେ ଲୁଚାଇଛ କହ ଗୋ କାହିଁପାଇଁ, ନାରଖାର ହେବ ଜାଣ ବସ୍ତ୍ର ଗତେ ॥ ଆକାଶର ମେଘ ପରି ସେ ଯହିଁ ଜାତ ହୁଏ ତହିଁ ମିଳାଏ ଶେଷେ । ଅସ ବାସେ ଯିବ ବଇ ଲାଷଇ ଗୀତେ । ୪ ।

ସ ମା ପ୍ତ ।

---

କଟକ-ଅରୁଣୋଦୟ ପ୍ରେସରେ ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ମୁଦ୍ରିତ ।

# ରାଜାରାଣୀ ଷ୍ଟୋର ।

ମହାଶୟ,

ଆପଣମାନଙ୍କୁ ଜଣାଇବା କାରଣ ଏହିକି ଯେ କବି ଶ୍ରୀ ବୈଷ୍ଣବ ପାଣିଙ୍କ ବିରଚିତ ପୁସ୍ତକମାନ ଏହି ରାଜାରାଣୀ ଷ୍ଟୋରରେ ମିଳେ ଏବଂ ଏହା ଛଡ଼ା ଅନ୍ୟାନ୍ୟ ପୁସ୍ତକମାନ ପ୍ରସ୍ତୁତ ଅଛି । ଗ୍ରାହକଗଣ ତଲବ କଲେ ଶୀଘ୍ର ପାଇ ପାରିବେ । ଏହା ଛଡ଼ା ପାଟ ମଠା ଟସର ଏବଂ ମାଣିଆବନ୍ଧ ଧୋତି ଚଦର କୋଟ ଜାମିଜ ବିଲାତି ଲୁଗା ଏବଂ ଦେଶୀ ଗାମୁଛା ମିଳେ । କୌଣସି ବ୍ୟବସାୟୀ ଲୋକମାନଙ୍କୁ ଯଥେଷ୍ଟ ପରିମାଣରେ କମିଶନ ଦେଇଥାଉଁ । ଆମ୍ଭର ଏହି ଉଦ୍ଦେଶ୍ୟ ଯେ ଭଦ୍ରବ୍ୟକ୍ତିମାନେ ଘରେ ଥାଇ କଟକର ଯାବତୀୟ ଚଳନ୍ତି ପଦାର୍ଥମାନ ପାଇ ପାରିବେ । ପ୍ରକାଶ ଥାଉକି ଆପଣଙ୍କ ନାମ ଧାମ ପୋଷ୍ଟଅଫିସ ରେଲଷ୍ଟେସନ ସ୍ପଷ୍ଟରୂପେ ଲେଖିବେ ଥରେ ପରୀକ୍ଷା ସ୍ୱରୂପ ପ୍ରାର୍ଥନୀୟ ।

---

## କବି ଶ୍ରୀ ବୈଷ୍ଣବ ପାଣିଙ୍କ ବିରଚିତ ।

| | | | |
|---|---|---|---|
| ଦଣ୍ଡୀପର୍ବ ପୁଅଙ୍ଗ | ଟ ୦ ୷ | ହରିଶ୍ଚନ୍ଦ୍ର ପୁଅଙ୍ଗ | ଟ ୦ ୵ |
| ଇଚ୍ଛାବତୀ ହରଣ | ଟ ୦ ୵ | ଅଭିମନ୍ୟୁବଧ ,, | ଟ ୦ ୵ |
| ରଙ୍ଗସଭା ପୁଃ ଗୋପାଳ | ଟ ୦ ୵ | ବସ୍ତ୍ରହରଣ ,, | ଟ ୦ (୧ |
| ମେଘନାଦବଧ ପୁଃ | ଟ ୦ ୷ | ଦୁର୍ଜ୍ଜୟମାନ ଗୀତିନାଟ୍ୟ | ଟ ୦ ୷ |
| ବିଦ୍ୟାସୁନ୍ଦର ,, | ଟ ୦ ୷ | ଶ୍ରୀବତ୍ସରାଜା | ଟ ୦ ୷ |
| ବିରହ ଲହରୀ ,, | ଟ ୦ ୷ | ନିର୍ବାସିତ ରାଜପୁତ୍ର | ଟ ୦ ୷ |
| କର୍ଣ୍ଣ ଦାନ ପରୀକ୍ଷା ,, | ଟ ୦ ୷ | ଅନାଥବାଳକ | ଟ ୦ ୷ |
| ଦକ୍ଷ ଯଜ୍ଞ ପୁଃ | ଟ ୦ ୵ | ହରପାର୍ବତୀ ବିଭା | ଟ ୦ ୵ |
| କର୍ଣ୍ଣ ରାଜା ପୁଅଙ୍ଗ | ଟ ୦ ୵ | ଫାର୍ଶି ଚନ୍ଦ୍ରିକା | ଟ ୦ ୵ |
| ମାଅଢ଼ାଣୀ ପୁଅମଡୁଆ | ଟ ୦ ୵ | ସଙ୍ଗୀତ ଲବଙ୍ଗଲତା | ଟ ୦ ୷ |
| ବିଲ୍ୱମଙ୍ଗଳ ଗୀତିନାଟ୍ୟ | ଟ ୦ ୷ | ନିକୁମ୍ଭାସୁର ବଧ | ଟ ୦ ୵ |

ପୋଃ ଚାନ୍ଦନୀଚୌକ
ନିମଚଉଡ଼ି—କଟକ }

ମହାଜନ
ଶ୍ରୀ ପ୍ୟାରୀ ମୋହନ ଦାସ ।